# ଜାଗରଣ



ଲେଖକ

ଶ୍ରୀ ଗୌରୀଚରଣ କାନୁନଗୋ

ପ୍ରକାଶକ

ଓଡ଼ିଶା ସଙ୍ଗୀତ ପ୍ରଚାର ବିଭାଗ, କଟକ

ମୂଲ୍ୟ ଠ ୦ /    ଏକଅଣା ମାତ୍ର

# ପ୍ରସ୍ତାବନା

1743

## —ମାତୃମୂର୍ତ୍ତିଙ୍କର ଆବିର୍ଭାବ—

—ଗୀତ—

ଜାଗୃହ ଜାଗୃହ ଜନନୀ ଜନମ ଭୂମି
କୋଟି କଣ୍ଠେ ଘନଘନ ଉଠେ କରୁଣ ଅର୍ତ୍ତଧ୍ୱନ ॥
ନାହିଁ ମା ବସ୍ତ୍ର ନାହିଁ ମା ଅନ୍ନ,
ବନ୍ୟା ବତାସ ଅଣିଛ୍ଛ ଦୈନ୍ୟ,
କ୍ଷୁଧାର୍ତ୍ତ ଶିଶୁକୁ କୋଳେ ଧରି କାନ୍ଦେ ପଲ୍ଲୀବଧୂ ଅଭାଗିନୀ । ୧ ।
ମୂକ ଜଗନ୍ନାଥ ବସି ନୀଳାଚଳେ
ଦେଖୁଛନ୍ତ ନିତ ଲକ୍ଷ କଙ୍କାଳେ,
ଅହା ବୋଲିବାକୁ ସାହା କେହି ନାହିଁ ତୋ ଛଡ଼ା ଆଗୋ ଜନନୀ । ୨ ।
ଅନ୍ନପୂର୍ଣ୍ଣାରୂପେ ଘରେ ଘରେ
ବାଢ଼ର ଅନ୍ନ, ଶାନ୍ତ ସାଦରେ,
ଶସ୍ୟ-ଶ୍ୟାମଳା ହେଉ ଏ ଧରଣୀ ଫଳ ଫୁଲେ ସୁଶୋଭନୀ । ୩ ।
ଶକ୍ତିର ରୂପେ ଲକ୍ଷ ଅନ୍ତରେ
ବସିକ ମା ଦଶ ପ୍ରହରଣ କରେ,
ତୋର ଏ ସନ୍ତତ, ନାଶିବେ ଅସୁର (କହ) ଜୟ ମା ଜନମଭୂମି । ୪ ।
ସହାର ରୂପେ ଜାଗ ଧରଣୀ
ନାଶ ମା ଦୈନ୍ୟ ନାଶ ମା ଅସୁର,
ସନ୍ତାନ ଡାକେ ତ୍ରାହି, ତ୍ରାହି, ତ୍ରାହି, ତ୍ରାହି ମା ଜନମଭୂମି । ୫ ।

---

# ଜାଗରଣ

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

—ପଥ—

(ରାଜୁ ଗୋଟାଏ ଖବରକାଗଜ ଧରି ବାଟରେ ଚାଲି ଆସୁ ଆସୁ ଦୋତାଲା ଉପରୁ ଶୁଭନ୍ତା—"ଚଲ୍ ଚଲ୍ ରେ ନଓ ଯୁଆନ୍" ଗୀତଟି। ଗୀତଟି ଶୁଣି ସାରି ଖବରକାଗଜ ଖଣ୍ଡିକ ପଢ଼ିବାକୁ ଲାଗିଲା ଗୋଟାଏ ବଣ୍ଟାଖୁଣ୍ଟ ନିକଟରେ। ଏପରି ସମୟରେ ଗୋଟିଏ ଷ୍ଟୀଲୋକର ଦେହରେ ଗୋଟାଏ ସାଇକେଲ୍ ଚାଲକ ଧକ୍କା ମାରି ଚାଲିଗଲା, ଷ୍ଟୀଲୋକଟି ପଡ଼ିଗଲା ଚିତ୍କାର କରି। ରାଜକିଶୋର ଦୌଡ଼ିଆସି ତାଙ୍କୁ ଉଠାଇ ବସାଇଲା।)

ରାଜୁ—ଆପଣ—, ହଠାତ୍—, ଏପରି—?

ପ୍ରେମ—ନା-ନା; ଏଇ ରାସ୍ତାରେ ଆସୁ ଆସୁ ଦେଖିଲି, ଯେପରି ଗୋଟାଏ ଲୋକ ସାଇକେଲରେ ମୋ ପଛେ ପଛେ ଅନୁସରଣ କରୁଛି। ମୁଁ ଭୟରେ ଗୋଟାଏ ବଡ଼ ରାସ୍ତାକୁ ଆସିବା ପାଇଁ ଦୌଡ଼ିଲାରୁ ସେ ମୋତେ ଗୋଡ଼ାଇଲା। ବୋଧହୁଏ ଆପଣଙ୍କୁ ଦେଖି ପଳାଇଗଲା। କିଏ ସେ ଏପରି ଅଭଦ୍ର?

ରାଜୁ—ବୁଝିଲି, ଏ ଗୁଣ୍ଡା ବ୍ୟତୀତ ଅନ୍ୟ କେହି ନୁହେ। ଅଚ୍ଛା ଆପଣଙ୍କର ଏପରି ଅଳ୍ପ ବୟସରେ ଏତେ ରାତିରେ ଏକାକୀ ବୁଲିବାର ଅଭିପ୍ରାୟ?

ପ୍ରେମ—ଅବଶ୍ୟ, ସେ ସବୁ ଶୁଣି ଲାଭ ନାହିଁ । ତେବେ ଆପଣ ଆଜି ମୋର ଯେଉଁ ଉପକାର କରିଅଛନ୍ତି, ସେଥିପାଇଁ ମୁଁ କୃତଜ୍ଞ ଓ ଚିରଋଣୀ । ବୋଧହୁଏ, ସେ ଋଣ ମୁଁ ଏ ଜୀବନରେ ଶୁଝି ପାରିବି ନାହିଁ — ଆପଣଙ୍କର ପରିଚୟ ?

ରାଜ୍—ମୋର ପରିଚୟ ବା କଅଣ ଦେବି ? ସାରାଦିନ ପରଧନ୍ଦା ଓ ଦୁନିଆଁ ଧନ୍ଦାରେ ବ୍ୟସ୍ତ ରହି ମୁହୂର୍ତ୍ତେ ସମୟ ମିଳେ ନା ଟିକିଏ ଖବରକାଗଜ ପଢ଼ିବାକୁ । ତେଣୁ ରାତିଅଧରେ ବତୀଖୁଣ୍ଟି ନିକଟରେ ଠିଆ ହୋଇ ଦୁନିଆର ଖବରଗୁଡ଼ାକ ନୋଟ କରି ରଖେ ଏଇ ଖବରକାଗଜରୁ । ଆପଣଙ୍କର ଘର କଅଣ ଏଇ ଟାଉନ୍‌ରେ ?

ପ୍ରେମ—ହଁ, ଥିଲା—କିନ୍ତୁ ଆଜି ନାହିଁ । ସେ ଅନେକ କଥା, କହିବାକୁ ବସିଲେ ଗୋଟାଏ ମହାଭାରତ ! ତେବେ ମୁଁ ବର୍ତ୍ତମାନ ଆସେଁ । ମୋର ବଡ଼ ଭୟ ହେଉଛି, ଦୟା କରି ମୋତେ ଟିକିଏ ଆଗେଇ ଦେବେ କି ?

ରାଜ୍—ହଁ—ହଁ; ନିଶ୍ଚୟ—ନିଶ୍ଚୟ ! !

(ଉଭୟଙ୍କର ପ୍ରସ୍ଥାନ)

---

## ଦ୍ୱିତୀୟ ଦୃଶ୍ୟ

### —ପାର୍କ ନିକଟ ପଥ—

(ପଥରେ ଗୋଟାଏ ଭିକାରୁଣୀ ଶୋଇଥିଲା, ପ୍ରବେଶ କଲେ ରାଜ୍, ଖଣ୍ଡେ ବାଡ଼ି ହଲାଇ ହଲାଇ )

ରାଜ୍—ଏଇ୍—ଏ ରାସ୍ତା ଉପରଟାରେ ଏମିତି ହୋଇ କିଏ ଶୋଇଛି ? ସରକାରୀ ରାସ୍ତା ଏକ୍‌ଦମ୍ ବନ୍ଦ ହୋଇଗଲା ଯେ ! ପୁଲିଶକୁ

ଡାକିବ ? ଏସ୍—! କିଏ ଶୋଇଚ, ଉଠନା ! ହେ ଶୋଇଲା-ବାଲା— !

ଲୀଳା—କିଏ ତୁମେ ବାବୁ ! ମୁଁ ଜଣେ ଛତରଖାଇ, ସାରାଦିନ ବୁଲି ବୁଲି ଟିକିଏ ବିଶ୍ରାମ କରୁଚ, ତା ବି ତମ ବଡ଼ଲୋକଙ୍କର ସହ୍ୟ ହେଉନି !

ରାଜୁ—ତୋ ଘର କେଉଁଠି ?

ଲୀଳା—ମୋ ଘର—ମୋ ଘର ଥିଲା ନନ୍ଦପୁର, ବାବୁ ; ପ୍ରାୟ ଆଜକି ୧୦ ବର୍ଷ ହେବ ମୁଁ ଏ ସହରରେ ବୁଲୁଚ, ଏ ସହରର ଗୋଠାକଯାକ ଯେ ମୋର ଘର ବାବୁ ! !

ରାଜୁ—ତୋର କଣ କେହି ନାହାଁନ୍ତି ?

ଲୀଳା—ଭାଇ, ବନ୍ଧୁ ସବୁ ଅଛନ୍ତି ବାବୁ—କିନ୍ତୁ ଥାଇ ନ ଥିଲା ପରି ।

ରାଜୁ—ଏ କିପରି କଥା, ତୋର ସମସ୍ତେ ଅଛନ୍ତି, ଅଥଚ ତୋର ଦଶା ଏପରି ?

ଲୀଳା—ଫଟା କପାଳ ବାବୁ—ଫଟା କପାଳ ! ମୋ ବାପା ଆମ ଗାଁର ଜମିଦାରଙ୍କ ଘରେ ଥିଲା ଗିଅଦା, ମୁଁ ମୋ ମାଆ ସାଙ୍ଗରେ ପିଲାଦିନୁ ଜମିଦାରଙ୍କ ଘରକୁ ଯିବା ଆସିବା କରୁଥିଲି । ତାଙ୍କ ବଡ଼ ପୁଅ ରାମବାବୁ କଟକ ଆସିଲେ ପାଠ ପଢ଼ିବାକୁ, ମୋ ମାଆ ତାଙ୍କର ଯତ୍ନ ନେବାପାଇଁ କଟକ ଆସିଲା, ମୁଁ ମଧ ମା ସଙ୍ଗରେ ଆସିଲି । ସେତେବେଳକୁ ମୋର ବୟସ ପ୍ରାୟ ୧୦—୧୧ ବର୍ଷ । କ୍ରମେ ଜମିଦାରପୁଅ ମୋତେ ଭଲ ପାଇବାକୁ ଲାଗିଲେ । ଦିନ ପରେ ଦିନ କଟିବାକୁ ଲାଗିଲା, କ୍ରମେ ମୋର ବୟସ ୧୬ ରେ ପଡ଼ିବାକୁ ଲାଗିଲା ଏବଂ ଆମ ଉଭୟଙ୍କ ମଧରେ ଭଲ ପାଇବାର ମାତ୍ରା ମଧ ବଢ଼ିବାକୁ ଲାଗିଲା । ତା'ର ଫଳରେ ମୋର ବାସନା ତେଲ, ସାବୁନ, ଅତର ଆଉ ଭଲ ଭଲ ଶାଢ଼ୀର ଅଭାବ ରହିଲା ନାହିଁ । କେଇ

ଦିନ ଏହିପରି ସୁଖରେ କଟିଲା । ଜାଣି ନ ଥିଲି ବାବୁ ! ଏଇ ଭଲ ପାଇବା ମୋର ଜୀବନର ସର୍ବନାଶର କାରଣ ହେବ ବୋଲି ! ସେଇ ଲୁହକରେ ପଢ଼ି ଜାଣି ପାରିଲି ଯେ, ଦୁନିଆରେ ମାଆଡାକ ଶୁଣିବାକୁ ଆଉ ମୋର ବେଶୀ ଡେରି ନାହିଁ । କିନ୍ତୁ ଠିକ୍ ତା ପରେ ପରେ ବାବୁ—ମୋର ସୁଖର ଅଧ୍ୟାୟ ଶେଷ ହୋଇ ଆସିଲା ଦୁଃଖର ଝଡ଼ଗଡ଼ । ଜମିଦାରପୁଅ ଘରୁ ମାଡ଼ ମାରି ବାହାର କରି ଦେଲେ । ତାଙ୍କର ଭଲ ପାଇବାର ଶେଷ ପୁରସ୍କାର ନେଇ କାନ୍ଦି କାନ୍ଦି ଗାଁକୁ ଫେରି ଆସିଲି । ଗାଁବାଲା ଭୁଠମାଟି ଅଟକାଇଲେ; ଜମିଦାରଙ୍କ ଆଦେଶରେ ସବୁଦିନ ପାଇଁ ଗାଁ ଛାଡ଼ି ଛତରକୁ ଗଲି । ଏଇ ଛିଣ୍ଡାକନା ପୁଳାକ ମୋର ସର୍ବସ୍ୱ । କାଛୁ କୁଣ୍ଡିଆରେ ଦେହ-ଯାକ ପୂରି ଯାଇଛି । ବର୍ଷା ଯୋଗୁଁ ଆଜ ଭିକ ମାଗିଯାଇ ପାରିନି ନାହିଁ । ଦିନଡମାମ ଖାଡ଼ାଖାଡ଼ା ଉପାସ ବାବୁ !

ରାଜୁ—ଅଚ୍ଛା, ତୁ ଗୋଟାଏ ନୂଆ ସଂସାର ଗଢ଼ି ନେଲେ ଯିବ କଅଣ ?

ଲୀଳା—ବାବୁ, ଗୋଟାଏ ସଂସାର ଗଢ଼ିବାକୁ ଯାଇ ଏତେ ହୀନଅବସ୍ଥା, ସେଥିରେ ପୁଣି ଆଉ ନୂଆ ସଂସାର !

ରାଜୁ—ହୁଁ, ଆଚ୍ଛା ଏଇ ପଇସା ଗୁଡ଼ିଅଣା ନେ, କଛି କିଣି ଖାଇବୁ !

ଲୀଳା—ବାବୁ, ବଡ଼ ଉପକାର କଲ, ଭଗବାନ୍ ତୁମର ମଙ୍ଗଳ କରନ୍ତୁ ! (ପ୍ରସ୍ଥାନ)

ରାଜୁ—ଠିକ୍, ଠିକ୍, ଦୁନିଆର ଦୈନନ୍ଦିନ ଇତିହାସରେ ଏ ମଧ୍ୟ ଗୋଟାଏ ଅଧ୍ୟାୟ ।

(ପ୍ରେମର ପ୍ରବେଶ)

ପ୍ରେମ—ନମସ୍କାର ! ଆପଣ ଏଠି ଯେ ?

ରାଜୁ—ମୋ ଘର ବାହାରୁ ପକ୍ଷରେ ରାତି ଦିନ ସବୁ ସମାନ, କାଳାକାଳର ମଧ୍ୟ ବିଚାର ନାହିଁ । ତେବେ ଆପଣ ବା କଅଣ ମୋ ପରି ଜଣେ ନିଶାଚର ? ଆପଣଙ୍କ ଆଖିକୁ କଅଣ ନିଦ ଆସେ ନା ?

ପ୍ରେମ—(ହସି ହସି) ଆଗେ ଖୁବ୍ ଶୋଉଥିଲି ରାଧଙ୍କ ପରି, ମାତ୍ର ବର୍ମାରୁ ଏଠାକୁ ଆସି ଆଖିରେ ନିଦ ନାହିଁ କି ପ୍ରାଣରେ ଶାନ୍ତି ମଧ୍ୟ ନାହିଁ। ରାତିସାରା ବୁଲି ବୁଲି ଦେଖେ ସହରର ଲୋକଗୁଡ଼ାଙ୍କର ଗତିବିଧି। ଦେଶ ଆଜି ଶତ୍ରୁ ହାତରେ ବିପନ୍ନ, ଅଥଚ ଏଇଟା କାହାର ଖିଆଲ୍ ନାହିଁ। ସମସ୍ତେ ସେହିପରି ନିଶ୍ଚିନ୍ତରେ ନାହିରେ ତେଲ ଦେଇ ଶୋଇଛନ୍ତି, କି ଦୁଃଖର ବିଷୟ!

ରାଜୁ—ବର୍ତ୍ତମାନ ରାତି ଅନେକ, ଖୁବ୍ ତ ଘୂରିଲେଣି, ଟିକିଏ ବିଶ୍ରାମ କଲେ ବୋଧହୁଏ ଭଲ ହୁଅନ୍ତା!

ପ୍ରେମ—ହଁ, ହୁଅନ୍ତା ସତ, କିନ୍ତୁ ସୁବିଧା କେଉଁଠି?

ରାଜୁ—ଓ; ଯଦି କିଛି ଆପଣଙ୍କର ଅପତ୍ତି ନ ଥାଏ, ତେବେ ଚାଲନ୍ତୁ ଏଇ ଦରିଦ୍ରର କୁଟୀରକୁ!

ପ୍ରେମ—ଧନ୍ୟବାଦ!

(ଉଭୟଙ୍କର ପ୍ରସ୍ଥାନ)

"COVER"

---

## ତୃତୀୟ ଦୃଶ୍ୟ

—କକ୍ଷ—

(ଘରର ଜମିଦାର ଓ ଗୃହର ଗୋବନ୍ଦାର ପ୍ରବେଶ)

ଜମିଦାର—ହୋ ରାଜୁ ବାବୁ, ରାଜୁ ବାବୁ! ଘରେ ଅଛ?

ଗୋବନ୍ଦା—ଆଜ୍ଞା ଘରେ ତ କଥଣ ଜାଣି ପଡ଼ୁଛି, ସେ ତ ନାହାନ୍ତି ନା କଥଣ!

ଜମିଦାର—ଆରେ ଅଚ୍ଛା ମୁସ୍କିଲ୍‌ରେ ପଡ଼ିଲି ତ ମଣିଷ। ଯେତେବେଳେ ଆସିଲେ ନାହାନ୍ତି, ତେବେ ସେ ଥାଆନ୍ତି କେତେବେଳେ? ଆସି

ଛଅ ଛଅ ମାସର ଘରଭଡ଼ା ବାକି, ତାଙ୍କର ତ ହିଳବ ଚନ୍ଦ୍ରାଦଙ୍କ ନାହିଁ, ଦେଖୁଚ । ଅରେ ଏଇଟା କଅଣ ଧର୍ମଶାଳା ? ବାପ ଦାଦା ଥାଉ ରଖି ଦେଇଛନ୍ତି ଯେ, ସୁପୁତ୍ରମାନେ ମନସୁଖରେ ଭୋଗଦଖଲ୍ କରୁଥିବେ ? ଦୈଃ, କି ଅନ୍ୟାୟ କଥା; ନଜେ ଯାଇ ଭଡ଼ା ଦେଇ ଆସିବେ କଅଣ ନା ମୁଁ ତାଗାଦା କରୁ କରୁ ମୋର ଜୂତାର ତଳଚମଡ଼ା ଛିଡ଼ିବାକୁ ବସିଲାଣି !

ଗୋବନ୍ଦା—ଅଜ୍ଞା ସେ ତ ବେକାର ପର ମନେ ହଉଚନ୍ତି, ସେ ଘରଭଡ଼ା ବା ଦେବେ କୁଆଡ଼ୁ ?

ଜମିଦାର—ହୁଁଃ—ବେକାର; କାହିଁକି ସଲଖ ସୁନ୍ଦର ଦେହଅଛିଏ, ରୋଜଗାର କରି ପାରୁ ନାହାନ୍ତି ? ନା ନା ଲଫଙ୍ଗା, ଲଫଙ୍ଗା । ଏମାନଙ୍କର ଉଦ୍ଦେଶ୍ୟ ଯେ, ଏହିପରି ପରର ଧନ ମାରି ମାରି ବୁଲିବା । କାହିଁକି ଅଛି ଏ ଯୁଦ୍ଧ ପରିସ୍ଥିତିରେ ଆମ ସରକାର କଅଣ କମ୍ କାମ ଖୋଲିଛନ୍ତି ? ତାର ପର ଯୁଆନ୍ ଟୋକାଗୁଡ଼ାକ ଏ. ଆର୍. ପି. ହିଭିକ୍‌ଗାର୍ଡ଼, ପାଇଓନୟରଫୋର୍ସ, ଟେକ୍‌ସଟାଇଲ ଡପାର୍ଟମେଣ୍ଟ ଓ ଓ୍ୱାରଟେକ୍‌ନସିୟାନ୍ ପ୍ରଭୃତି କାମରେ ପଶି ଶହ ଶହ ଟଙ୍କା କମେଇ ଘରକୁ ପଠାଉଛନ୍ତି; ଏକୁ ସେ ବୁଦ୍ଧି ଦଶେ ନା ? ନା, ନା, କୋଢ଼ିଆ—କୋଢ଼ିଆ ! ଅଚ୍ଛା, ଅଚ୍ଛା,— ମୋଠି ବି ଭଲ ଔଷଧ ଅଛି ଯେ, ଟଙ୍କା ନ ଦେଇ ଯିବ କୁଆଡ଼େ ? ଏଯ୍ ଗୋବନ୍ଦା, ତୁ ଏ ଘରେ ଗୋଟାଏ ତାଲା ପକା, ଦେଖେଁ ଯେ ଟଙ୍କା ନ ଦେଇ ଯିବ କୁଆଡ଼େ ?

(ତାଲା ପକାଇ ଉଭୟଙ୍କର ପ୍ରସ୍ଥାନ)

( ପରେ ପରେ ପ୍ରେମ ଓ ରାଜୁର ପ୍ରବେଶ )

ରାଜୁ—ଏଇ ଯେ ଘରଟି ଦେଖୁଛନ୍ତି, ସେଇଟି ମୋର ମନୋହର ପ୍ରାସାଦ । ସେଠାରେ ସମୟ ସମୟରେ ବସି ବିଶ୍ରାମ କରି ମୋର ସମସ୍ତ କ୍ଳାନ୍ତି

ଦୂର କର ପୁଣି ଗସ୍ତାକୁ ବାହାର ପଡ଼େ ବୁଲିବାକୁ ! ଅଛୁ ଖାଇବା ପିଇବା ? "କଉ ସିଜ୍‌କା ଘନ୍ଦା, କଉ ମୂଠିଭର ଚନ୍ଦା, କଉ ଓପ ମନ୍ଦା ।" ତେବେ ଚାଲନ୍ତୁ ଘର ଭିତରକୁ ଯିବା ; ଅରେ ଘରେ ତାଲା ବନ୍ଦ ଯେ ! ଓ, ବଦ୍‌ମାସ ଘରବାଲାର ଏ କାର୍ତ୍ତି ।

ପ୍ରେମ—ଆପଣଙ୍କ ଅଜ୍ଞାତରେ ଘରେ ତାଲାଦେବା ଉଦ୍ଦେଶ୍ୟ ?

ରାଜ୍—ଉଦ୍ଦେଶ୍ୟ ଅବଶ୍ୟ ଅଛି ମହତ୍, ଛଅ ଛଅ ମାସର ଘରଭଡ଼ା ବାକି, ତାର ବା ଦୋଷ କଅଣ ? ଅଚ୍ଛା ଆମକୁ ବି ତାଲା ଭାଙ୍ଗି ଆସେ ଯେ !

(ତାଲା ଭାଙ୍ଗିବା) ଓ (ଘରେ ପ୍ରବେଶ କରୁ)

ରାଜ୍—( ଗୋଟାଏ ଖଟିଆ ଟାଣି ଆଣି ) ବର୍ତ୍ତମାନ୍ ଆପଣ ନିଶ୍ଚିନ୍ତ ମନରେ ବିଶ୍ରାମ ନେଇ ପାରନ୍ତି !

ପ୍ରେମ—କିନ୍ତୁ ଆପଣ !

ରାଜ୍—ଆହା—ହା, ମୋପାଇଁ ବ୍ୟସ୍ତ ହେବେ ନାହିଁ । ମୁଁ ମୋର ବନ୍ଦୋବସ୍ତ କର ନେଉଛି !

(ଖଣ୍ଡେ ଛିଣ୍ଡା ସପ ଟାଣି ବିଛାଇଲା)

ପ୍ରେମ—ଛି, ଛି, ଏଇଟା କିନ୍ତୁ ବଡ଼ ଅସୁନ୍ଦର !

ରାଜ୍—କେବେ ନୁହେଁ, କେବେ ନୁହେଁ, ଖୁବ୍ ସୁନ୍ଦର ! ମୋ ପରି ବାରବୁଲାମାନଙ୍କର ମସିଣା ଓ ମଶାଣି ସବୁ ସମାନ ! ଆପଣ ଯେ ମୋର ଅତିଥି,ଆପଣଙ୍କର ସୁବିଧା ଅସୁବିଧା ମୋର ପ୍ରଥମେ ଦେଖିବା କର୍ତ୍ତବ୍ୟ ! ଏଇ ନିଅନ୍ତୁ ଏଇ କମ୍ବଳଖଣ୍ଡିକ ।

ପ୍ରେମ—କିନ୍ତୁ ଆପଣ ଯେ ଖାଲିଦେହରେ ଶୋଇଲେ ?

ରାଜ୍—ମୁଁ ମୋର ଠିକ୍ ଅଛି, (ଲୁଗାକାନି ଘୋଡ଼ି ହୋଇ) ଏ ଜୀବନରେ କେତେ ଗଛ ବାଟରେ ଘାଟରେ ଏହିପରି ଖାଲି ଦେହରେ କଟି ଯାଇଛି ! ଅଚ୍ଛା, ସେଦିନ ଆପଣ ବର୍ମା କଥାର

ଅଗ୍ରାସ ଦେଇ ବନ୍ଦ କରି ଦେଲେ ଯେ, କଦାପି ନା ସେଠିକାର ଖବର ! ଅଚ୍ଛା, ଆପଣଙ୍କର ଘର କଅଣ ବର୍ମାରେ ?

ପ୍ରେମ—ନା, ଶୁଣିଛୁ ଆମ ଘର ଏହି କଟକ ଠାଉନରେ ଥିଲା, କିନ୍ତୁ ନିର୍ଦ୍ଦିଷ୍ଟ ସ୍ଥାନଟା କହି ପାରିବି ନାହିଁ, ଆଉ, ବଂଶରେ ଯେ କିଏ ଅଛନ୍ତି, ତାଙ୍କୁ ମଧ୍ୟ ଚିହ୍ନେ ନା ! ଦୁଇ ତିନି ପୁରୁଷ ହେଲା ଆମର ପୂର୍ବ ପୁରୁଷମାନେ ବର୍ମାରେ ଯାଇ ରହିଥିଲେ । ବର୍ତ୍ତମାନ ବର୍ମାର ଅବସ୍ଥା ଶୁଣିଛନ୍ତି ତ ? ତେଣୁ ଅତି କଷ୍ଟରେ ପୁଣି ଜନ୍ମଭୂମିକୁ ଫେରିଲି ।

ରାଜୁ—ଆପଣଙ୍କର ଏଠାକୁ ଆସିବାର କେତେ ଦିନ ହେବ ?

ପ୍ରେମ—ପ୍ରାୟ ମାସେ ଦୁଇମାସ ହେବ । ଆସିବାର ଉଦ୍ଦେଶ୍ୟ, ଭାରତର ଭାଇ ଭଉଣୀମାନଙ୍କୁ ଶୁଣାଇବି ବର୍ମାର ସେହି କରୁଣ କାହାଣୀ ଓ ଜାପାନୀମାନଙ୍କର ନିର୍ମମ ଅତ୍ୟାଚାର । ଦେଶ, ଜାତି ଓ ଧର୍ମ ଉପରେ ଆଜି ଅତ୍ୟାଚାରର ଯେଉଁ ପ୍ରଭାବ ପଡ଼ୁଛି, ତାର ଆଶୁ ପ୍ରତିକାର ହେବା ଉଚିତ । ଏତିକି ବେଳୁ ସଂଗଠିତ ନ ହେଲେ ଯେ କେତେ ଦୁଃଖ, କେତେ ଲାଞ୍ଛନା ଭୋଗିବାକୁ ହେବ, ତା ମୁଁ ଭାଷାରେ ବ୍ୟକ୍ତ କରି ପାରୁ ନାହିଁ । ମୁଁ ନିଜ ଚକ୍ଷୁରେ ଦେଖିଛି, ଆମ ଭାରତୀୟ ସୈନ୍ୟମାନେ ବର୍ମାବାସୀଙ୍କୁ ରକ୍ଷା କରିବାକୁ ଯାଇ ମୃତ୍ୟୁ ବରଣ କଲେ । ଶତ୍ରୁର ଗୋଳା ବର୍ଷଣ ସମୟରେ ସାହସ ଓ ଧୈର୍ଯ୍ୟ ସହିତ ନିଜ ସ୍ଥାନରୁ ନ ଘୁଞ୍ଚି ତାର ଉଡ଼ାଜାହାଜ ଗୁଡ଼ାକ ଗୋଟା ଗୋଟା କରି ତଳକୁ ଖସାଇ ପକାଇଲେ । ସେତେବେଳେ ମୋର ଛାତି ଗର୍ବ ଓ ଆନନ୍ଦରେ ଫୁଲି ଉଠିଲା । ମୁଁ ବିଶ୍ୱାସ କଲି ଯେ, ଭାରତକୁ ଶତ୍ରୁ ଗଲେ, ସେ ତାର ଉପଯୁକ୍ତ ଉତ୍ତର ପାଇ ଫେରିବ । କିନ୍ତୁ ଭାରତରେ ଆସି ଦେଖୁଛି ଯେ, ବିପଦ ଘନେଇ ଆସୁଛି ବୋଲି କାହାର ଘୋର ଶବ୍ଦ ନାହିଁ ।

ରାଜ୍—ଅଚ୍ଛା, ଆପଣ କଅଣ ଏକାକୀ ଅଛିଲେ ? ଆପଣଙ୍କର ବାପ ମାଆ ଅଛନ୍ତି ତ ?

ପ୍ରେମ—ସେ କଥା ପଚାରି ଅଯଥା ମୋ ପ୍ରାଣରେ କଷ୍ଟ ଦେବେ ନାହିଁ । ମୋର ପରି ଅସଂଖ୍ୟ ଦୁଃଖିନୀ, ବାପ ଭାଇଙ୍କୁ ଶତ୍ରୁର କମାଣ ମୁହଁରେ ବଳି ଦେଇଛନ୍ତି । ଆଜି ସଂସାରରେ ମୁଁ ଏକାକିନୀ, ମୋର ସାଥି କେବଳ ମୋର ପରି ଅଭାଗିନୀ । ଯେତେବେଳେ ଭୟରେ ଲୋକେ ଚଟ୍ଟଗ୍ରାମ ଓ ମଣିପୁର ରାସ୍ତାଦେଇ ଯାନ ବାହନର ଅପେକ୍ଷା ନ କରି ଉପାସ ଭୋକରେ ପ୍ରାଣ ବଞ୍ଚାଇବାକୁ ପଳାଇ ଆସିଲେ, ସେତେବେଳେ ମୁଁ ଏପରି ଭାବରେ ଅଛିବା ନିରାପଦ ମନେ ନ କରି ଗୋଟିଏ କ୍ଷୁଦ୍ର ପଲ୍ଲୀରେ ଆତ୍ମଗୋପନ କରି ଅନେକ ଦିନ କଟାଇ ଶେଷରେ ପଳାଇବାକୁ ବାଧ୍ୟ ହେଲି; ଅତି ସତର୍କରେ ଆମେ ଅତି ଅଳ୍ପସଂଖ୍ୟକ ଲୋକ ସର୍ବଶେଷରେ ବୋଧ ହୁଏ ବର୍ମା ଛାଡ଼ୁଛୁ । ଦେଶବାସୀଙ୍କୁ ଆମର ଏ କରୁଣ କାହାଣୀ ଶୁଣାଇବା ପାଇଁ ବୋଧହୁଏ ଈଶ୍ୱର ଖୁବ୍ ନିରାପଦରେ ଆମ୍ଭମାନଙ୍କୁ ଏଠାରେ ପହଞ୍ଚାଇ ଅଛନ୍ତି ।

ରାଜ୍—ଯାହା ହେଉ, ଭଗବାନଙ୍କର ଆପଣମାନଙ୍କ ପ୍ରତି ଅସୀମ ଦୟା, ହୁଏ ତ କୌଣସି ମହତ୍ ଉଦ୍ଦେଶ୍ୟ ଆପଣମାନଙ୍କ ଦ୍ୱାରା ସାଧିତ ହେବ ।

ପ୍ରେମ—ଆଶା କରେଁ, ଏ ଅସହାୟ ଅବସ୍ଥାରେ ଆପଣ ନିଜର ଜ୍ୟେଷ୍ଠ ଭଉଣୀ ମନେ କରି ମୋର ସହାୟ ହେବେ ଓ ଯେଉଁ ଉଦ୍ଦେଶ୍ୟରେ ମୁଁ ଏ ରାସ୍ତାଘାଟମାନ ବୁଲୁଛି, ସେଥିରେ ମୋର ସାହାଯ୍ୟ କରିବେ ।

ରାଜ୍—ଏ ବାରବୁଲା ସମସ୍ତଙ୍କୁ ସାହାଯ୍ୟ କରେ, ଆଉ ଭଉଣୀ ତୁମେ— ତୁମକୁ ସାହାଯ୍ୟ କରିବ ନି ? ଅଚ୍ଛା ବର୍ତ୍ତମାନ ତ ରାତି ପାହୁଲାଣି,

ଚାଲ ମୋର ବାଲ୍ୟବନ୍ଧୁ ରାମ ପାଖକୁ ଯିବା, ତା ସଙ୍ଗରେ ପରାମର୍ଶ କରି ଯାହା କରିବା କରିବା ।

[ପ୍ରସ୍ଥାନ]

---

## ଚତୁର୍ଥ ଦୃଶ୍ୟ

### —ପାର୍କ—

( ପାର୍କ ନିକଟରେ ରାମ ବାବୁ ଗୋଟିଏ ଫୁଲ ଧରି ଚିନ୍ତାମଗ୍ନ ଭାବରେ ବୁଲୁଛନ୍ତି )

ରାଜୁ—ଆରେ ରସିକ ! କଣ ଖୁବ୍ ଭୋରରୁ ଆସି ପାର୍କରେ ହାଜର ? ମୁଁ ଯାଇ ବସା ଖୋଜୁଛି, ପାଉଛି କେତେବେ ?

ରାମ—ଅରେ—ହଠାତ୍ ରାଜୁ ବାବୁଙ୍କର ଆବିର୍ଭାବ ଯେ, କଅଣ ମନେ କରି ?

ରାଜୁ—ଅରେ ସେ ଅନେକ କଥା, ଏ ହେଉଛନ୍ତି ଜଣେ ବର୍ମା ଫେରନ୍ତା, ନାମ ଶ୍ରୀ ପ୍ରେମଲତା ମହାନ୍ତି ।

ରାମ—ଓ ! ଏଙ୍କର କଥା ତ ଶୁଣିଥିଲି ! ନମସ୍କାର, ବସନ୍ତୁ ମିସ୍ ମହାନ୍ତି । ଅରେ ଆମ ଓଡ଼ିଆ ତ ?

ରାଜୁ—ହିଁ ହିଁ—ସାଇବ, ଅରେ ଓଲୁ, ଶୁଣୁଛୁ ପରି ମହାନ୍ତି ?

ରାମ—ଚୁପ୍ ବସ୍ ନା, ଏକ ନମ୍ବର ଭଗା ତୁ !

ରାଜୁ—ଏ ମୋର ବାଲ୍ୟବନ୍ଧୁ ରାମ ବାବୁ, ମସ୍ତବଡ଼ ଜମିଦାରଙ୍କର ପୁଅ, ଏବେ ଦେଶକାମ ପାଇଁ ନେତା ସାଜିଛନ୍ତି ।

ରାମ—ଆପଣ କେବେ ବର୍ମାରୁ କେତେ ଦିନେ ଫେରିଛନ୍ତି ?

ପ୍ରେମ—ମୁଁ ଏଇ ପ୍ରାୟ ମାସେ ଦୁଇ ମାସ ହେବ ।

ରାମ—ଦସ୍ପା କର ସ୍ୱାଧୀନ ବର୍ମା ବିଷୟରେ ପଦେ ଅଧେ କହିବେ କି ? ଏଇ ଜଗ୍‌ନ୍ନାଜାହାଜ ଆକ୍ରମଣ ପରେ ଯେଉଁ ସ୍ୱାଧୀନତା ପାଇଛି ବର୍ମା, ରେଡ଼ିଓରେ ଶୁଣୁ ମେ ବର୍ମା ଦଖଲ ପରେ ଜାପାନୀମାନେ ବର୍ମାବାସୀମାନଙ୍କୁ ସ୍ୱାଧୀନତା ଦେଇ ଖୁବ୍ ସୁଖରେ ରଖୁଛନ୍ତି !

ପ୍ରେମ—ଭୁଲ୍, ଭୁଲ୍ ଧାରଣା ଆପଣମାନଙ୍କର, ଆପଣ ରେଡ଼ିଓରେ ଶୁଣୁଛନ୍ତି, କିନ୍ତୁ ମୁଁ ମୋର ଆଖିକୁ ତ ଅବିଶ୍ୱାସ କରି ପାରିବି ନାହିଁ ! ନିଷ୍ଠୁର ଜାପାନୀମାନେ ବନ୍ଧୁକର ସଙ୍ଗୀନ୍ ମୁନରେ ଦେଇଛନ୍ତି ସ୍ୱାଧୀନତା ଉପହାର, ଜଗ୍‌ନ୍ନାଜାହାଜ ଆକ୍ରମଣରେ ଜାପାନୀମାନେ ବର୍ମାବାସୀଙ୍କ ଘରଦ୍ୱାର ଧ୍ୱଂସ କଲେ; ଆଉ ସେମାନଙ୍କ ମାଆ ଭଉଣୀମାନଙ୍କ ଉପରେ ନିର୍ମମ ଅତ୍ୟାଚାର କଲେ, ଯେଉଁମାନେ ପ୍ରତିବାଦ କଲେ ବନ୍ଧୁକର ସଙ୍ଗୀନରେ ସେମାନଙ୍କର ବିଚାର ହେଲା । ବର୍ତ୍ତମାନ ଜାପାନ ତାର ପୈଶାଚିକ ପ୍ରଭୁତ୍ୱ ବିସ୍ତାର କରୁଛି ବର୍ମାବାସୀଙ୍କ ଉପରେ ।

ରାଜୁ—କି ରେ, ତୁ ପରା କହୁଥିଲୁ ଯେ, ଜାପାନୀମାନେ ଆମକୁ ସ୍ୱାଧୀନତା ଦେବେ, ଏବେ ବୁଝିଲୁ ତ ?

ରାମ—ଆରେ ଆମେ ତ ଘଟଣା ସ୍ଥଳରେ ନ ଥିଲେ, ଯିଏ ଯାହା କହିଲା । ତାହାରୁ ଶୁଣିବା କଥା ତ ।

ରାଜୁ—ଭାଇ ରାମ ! ଆମେ ତୁହେଁ ପରାମର୍ଶ କରି ଭାବୁଛୁ ଯେ, ସ୍ୱାଧୀନତା ଆମକୁ ଭିକ୍ଷା କରିବାକୁ ହେବ ନାହିଁ । ସେଥିପାଇଁ ନିଜକୁ ଅଶେଷ ତ୍ୟାଗ କରିବାକୁ ହେବ । ଆମକୁ ସଂଗଠନ କରିବାକୁ ହେବ, ଦେଶକୁ ସୁଶାସନ କରିବା ପାଇଁ ଆମକୁ ପ୍ରସ୍ତୁତ ହେବାକୁ ହେବ । ଆମର ସ୍ୱାଧୀନତା ଆମକୁ ହାସଲ କରିବାକୁ ହେବ । ଏଇ ବର୍ବର ହିଟଲର୍, ତୋଜୋ ଓ ମୁସୋଲିନୀ ଯଦି ଆମକୁ ସ୍ୱାଧୀନତା ଦେବାକୁ ଇଚ୍ଛା କରୁଥାନ୍ତେ, ତେବେ ସ୍ୱାଧୀନ ଫ୍ରାନ୍ସ,

ପୋଲାଣ୍ଡ, ହଲାଣ୍ଡ, ବେଲ୍‌ଜିୟମ୍ ପ୍ରଭୃତି ଦେଶମାନଙ୍କର ସ୍ୱାଧୀନତା ନଷ୍ଟ କରନ୍ତେ କାହିଁକି ? ସେମାନଙ୍କ ମିଥ୍ୟା ପ୍ରଚାରରେ ବିଶ୍ୱାସ କରିବା ଉଚିତ ନୁହେଁ । ସେମାନେ ଯଦି ବିଶ୍ୱରେ ଶାନ୍ତି ଓ ମୁକ୍ତିର ମନ୍ତ୍ର ପ୍ରଚାର କରିବାର ମତଲବ ଧରିଥାନ୍ତେ, ତେବେ ଗୋଲା ବାରୁଦ ଓ ବିଷାକ୍ତ ବାଷ୍ପରେ ଦୁନିଆର କମନୀୟ ବସ୍ତୁକୁ ନଷ୍ଟ କରନ୍ତେ କାହିଁକି ? ସେମାନଙ୍କର ରାକ୍ଷସୀ ମନୋବୃତ୍ତିର ଶେଷ କେଉଁଠି ଅପେକ୍ଷା କରି ଦେଖିବା । ଯେଉଁ ଜାପାନୀଙ୍କୁ ଚୀନ ସେଦିନ ଉଚ୍ଚ ଆସନ ଦେଇଥିଲା, ସେମାନେ ସ୍ୱାଧୀନ ଚୀନ୍‌ର କି ସର୍ବନାଶ କଲେ ଜାଣୁ ତ ? ଭାଇ ! ସ୍ୱାଧୀନତା ରକ୍ଷା ଆମର ଉଦ୍ଦେଶ୍ୟ ନୁହେଁ, ଆମେ ତ ନିଜେ ସ୍ୱାଧୀନ, ଚିରଉନ୍ନତ, ବୀର ! ଆମର ଖଡ୍‌ଗ ଆମର ଜାତୀୟ ଗୌରବ ରକ୍ଷାକାରୀ, ବର୍ତ୍ତମାନ ଏ ସନ୍ଧିକ୍ଷଣରେ ଦେଶର ଆବାଳବୃଦ୍ଧବନିତା ଶତ୍ରୁ ସମ୍ମୁଖରେ ସାହସ ବାନ୍ଧି ଛିଡ଼ା ହେବା ଦରକାର ।

ପ୍ରେମ—ରାମ ବାବୁ ! ଆପଣ ଜଣେ ଦେଶପ୍ରେମିକ, ଯଦି ଦେଶର ଗୌରବ ରକ୍ଷା କରିବାକୁ ଚାହାନ୍ତି, ତେବେ ଏତିକି ବେଳୁ ଅଣ୍ଟାଭିଡ଼ି ଛିଡ଼ା ହେବାକୁ ହେବ ।

ରାମ—ତେବେ କହନ୍ତୁ, ବର୍ତ୍ତମାନ ଆମର କର୍ତ୍ତବ୍ୟ କଅଣ ?

ପ୍ରେମ—ଆମର ପ୍ରଧାନ କର୍ତ୍ତବ୍ୟ ହେଉଛି ଯେ, ପ୍ରତ୍ୟେକ ଗ୍ରାମବାସୀଙ୍କୁ ଜାପାନୀମାନଙ୍କ ଅତ୍ୟାଚାରର କରୁଣ କାହାଣୀ ଶୁଣାଇ ସେମାନଙ୍କ ପ୍ରାଣରେ ନବଜାଗରଣ ଅଣିବାକୁ ହେବ । ଆଉ ଦେଶର ପ୍ରତ୍ୟେକ ଯୁବକଙ୍କୁ ଶତ୍ରୁର ବିରୁଦ୍ଧରେ ଛିଡ଼ା ହେବାକୁ ପ୍ରବର୍ତ୍ତାଇବାକୁ ହେବ ।

ରାମ—ଦେଶରେ ଗୁପ୍ତ ନାଜୀ ଦଲାଲ୍‌ମାନଙ୍କ କଥାରେ ବିଶ୍ୱାସ କରି ମୁଁ ତ ଭୁଲ କରିଛି ! ଏଣିକି ସେମାନଙ୍କୁ ଦେଶରୁ ଧ୍ୱଂସ କରିବା ମୋର ପ୍ରଧାନ ବ୍ରତ, ଏଇମାନେହିଁ ଦେଶର ସର୍ବନାଶର କାରଣ ।

ଛି, ଛି ! କ ଭୁଲ୍ ଯେ ମୁଁ କରିଛି ! ଜୀବନରେ ଗୋଟାଏ ମସ୍ତବଡ଼ ଭୁଲ୍ କରିଛି, ଯୌବନର ପ୍ରଥମ ସୋପାନରେ, ତା ପରେ ଏ ଦ୍ୱିତୀୟ ଭୁଲ ।

ପ୍ରେମ—ତେବେ ଆପଣଙ୍କର ଜୀବନଟା ଦେଖୁଛି ଭୁଲରେ ଭର୍ତ୍ତି ।

ସ୍ୱାମୀ—ବାସ୍ତବକ୍, ଆଚ୍ଛା କହି ପାରିବେ, ଏ ଭୁଲର କଅଣ ସଂଶୋଧନ ନାହିଁ ?

ପ୍ରେମ—ନିଶ୍ଚୟ, ଦୁନିଆର ପ୍ରତ୍ୟେକ ଭୁଲର ସଂଶୋଧନ ଅଛି, ଏତେ ଅଧୀର କାହିଁକି, ଆଜ ଆମର ଆଶ୍ରମକୁ ଚାଲନ୍ତୁ ।

---

## ପଞ୍ଚମ ଦୃଶ୍ୟ

### —ପଥ—

( ଛତରଖାଇ ଗୀତ ଗାଇ ଗାଇ ଯାଉଥିଲା )

ଗୀତ

ଲୀଳା— ଅପେ ତୁ ଅପଣା ସାଥୀ

ପର ହାତକୁ ଭରସା କରି ଛତରେ ହାଣ ନା କାତି ।

ଦୁନିଆରେ କେହି ନୁହେଁ କାହାର ସକଳେ ସୁଖର ସଖା

ମିଛରେ ମରୁ ରେ ମୋର ମୋର ବୋଲି ଦୁଃଖରେ ନ ଦେବେ ଦେଖା

ଧନ ବାନ୍ଧ ଯେ କରେ ସେ ଏକା

ନ ବାରେ ଅଜାତ ଜାତି । ୧ ।

"ଅପେ ତୁ ଅପଣା ସାଥି"

ଗୋଟାଏ ପଇସା ଦେବ ମା ?

ପ୍ରେମ—ତୁମେ କିଏ ମା ? ଏ କରୁଣ ଗୀତଟି ଗାଇ ମୋର ପ୍ରାଣରେ ଯେ ବ୍ୟଥାର ତରଙ୍ଗ ଚୁହାଇ ଦେଲ ।

ଲୀଳା—ମୁଁ ଜଣେ ଭିଖାରୁଣୀ ମା, ଭିଖାରୁଣୀ ! ଜୀବନର ପ୍ରଥମ ସମସ୍ତିକା ତୁବ୍ ଯୁକ୍ତୁଖିକୁରେ କଟି ଯାଇଛି, ବର୍ତ୍ତମାନ ଭାବୁଛି ଆଉ ବାକି କେଇଟା ଦିନ କପରି କଟିବ ।

ପ୍ରେମ—ବୃଥାରେ ଭାବି ଲାଭ କଅଣ ? ଭଗବାନ୍ ତୁମକୁ ମଣିଷ କରି ଗଢ଼ିଛନ୍ତି, କେବଳ ଭାବିବା ଛଡ଼ା ଆଉ କଅଣ କିଛି କରିବାର ଜଗତରେ ନାହିଁ ?

ଲୀଳା—ମୁଁ ଯେ ଭିଖାରୁଣୀ ମା; ସମାଜ ନାଁ ରଖିଛି 'ଛତରଖାଇ' ; ଆଉ ମୁଁ ଭିକ୍ଷା କରିବା ଛଡ଼ା କଅଣ ବା କରି ପାରିବି ମା ?

ପ୍ରେମ—ସବୁ କରି ପାରିବ, ସେଥିପାଇଁ ଲୋଡ଼ା ଧୈର୍ଯ୍ୟ ଓ ସାହସ । ତୁମରି ପରି ମୁଁ ମଧ ଜଣେ ସାଥିହରା ଦୁଃଖିନୀ, ଆଉ ମଧ ଆମ ପରି ଦୁନିଆରେ ଅନେକେ ଅଛନ୍ତି । ଆମେମାନେ ଦୁଃଖିନୀ, ଆମମାନଙ୍କର ହୃଦୟ ବୁଝେ ଦେଶର ଅସଂଖ୍ୟ ନରନାରୀଙ୍କର ବ୍ୟଥା, ଅଚ୍ଛା ଲଢ଼େଇ ବିଷୟରେ ତୁମେ କିଛି ବୁଝ ?

ଲୀଳା—ଦିନ ରାତି ମୁଁ ଯେ ଲଢ଼େଇ କରୁଛି ମା !

ପ୍ରେମ—ତୁମେ ଲଢ଼େଇ କରୁଛ, କାହା ସଙ୍ଗେ ?

ଲୀଳା—କାହିଁକି, ରାତି ପାହିଲେ ଏଇ ପୋଡ଼ା କପାଳ ଆଉ ଏ ପୋଡ଼ା ପେଟ ଗୃଖଣ୍ଡିକ ସାଙ୍ଗରେ ! କିନ୍ତୁ ପାରୁ ନାହିଁ ମା, ପାରୁ ନାହିଁ !

ପ୍ରେମ—ଓଃ, ଲଢ଼େଇ ବୋଇଲେ ତୁମେ ଏଇଆ ବୁଝ—ନା ?

ଲୀଳା—ସଂସାରରେ ଆମର ଆଉ ଅଛି କଅଣ ଯେ ଆମେ ସେ ବିଷୟରେ ଭାବିବାକୁ ଯିବୁ ?

ପ୍ରେମ—ଆଚ୍ଛା, ତୁମେ ଜାପାନୀ ଯୁଦ୍ଧ ବିଷୟରେ କିଛି ଜାଣ ?

ଲୀଳା—ହଁ ମା ଶୁଣିଛି, ଲୋକେ କହନ୍ତି ଜାପାନ ଲୁଅଡ଼େ ଆମ ଦେଶକୁ ମାଡ଼ି ଆସିବାକୁ ବସିଛି ।

ପ୍ରେମ—ହଁ, ଠିକ୍ ଶୁଣିଛ ! ବର୍ତ୍ତମାନ ତୁମର ଦେଶପାଇଁ ବହୁତ କାମ କରିବାର ଅଛି । ଯେଉଁ ଦେଶରେ ତୁମ ପରି ଓ ମୋ ପରି ଦୁଃଖିନୀ ଅଛନ୍ତି, ସେ ଦେଶକୁ ଜାପାନୀ ମୁହଁରୁ ବଞ୍ଚାଇ ନୂଆ ସମାଜ ଗଢ଼ିବାକୁ ହେବ ! ତେବେ ଯାଇଁ ଦେଶରେ ସୁଖଶାନ୍ତି ଫେରି ଆସିବ, ଆଉ ଏ ପେଟ ପାଇଁ ଲଢ଼େଇ କରିବାକୁ ହେବ ନାହିଁ । ଆସ ଉପରି କଅଣ କରିବାକୁ ହେବ,ମୁଁ ସବୁ ବତାଇ ଦେବି । ଆଜିଠାରୁ ମନେ କର ମୁଁ ତୁମର ସାନ ଭଉଣୀ, ଚାଲ ଆଜିଠାରୁ ମୋ ସାଥିରେ ରହିବ ଏବଂ ଆମ ଦୁହିଙ୍କ ଜୀବନର ବ୍ରତ ହେବ ଏକ !!

(ପ୍ରସ୍ଥାନ)

---

## ଷଷ୍ଠ ଦୃଶ୍ୟ

—କକ୍ଷ—

( ରାଜୁ ବସି ରେକର୍ଡ଼ ବଜାଉଥିଲା )

ପ୍ରେମ—ବାଃ, ବେଶ୍ ଦେଶକାମ କରୁଛେ ଆପଣ ! ପ୍ରେମସଙ୍ଗୀତରେ ରଙ୍ଗମହଲ ତୋଳିବାର ସମୟ କଅଣ ଏଇ ! ଯେତେବେଳେ ଶତ୍ରୁ ଆସିବ କମାଣ ନେଇ ଆପଣ ବୋଧହୁଏ ତା'ର ଉତ୍ତର ଦେବେ ଏଇ ପ୍ରେମସଙ୍ଗୀତ ଗାଇ—ନା ? ଯେତେବେଳେ ଆମର ବିଜୟ ପାଇଁ ଓଡ଼ିଶାର ପ୍ରତି ପୁରପଲ୍ଲୀରେ, ଶତ୍ରୁବିରୁଦ୍ଧରେ ସଙ୍ଗଠନ ଚାଲିଛି, ସେତେବେଳେ ବୃଥାରେ ସମୟ ନଷ୍ଟ କରିବାକୁ ଆପଣଙ୍କୁ ଭଲ ଲାଗୁଛି କିପରି ?

ରାଜୁ—ଆଃ, ସବୁ ରସଭଙ୍ଗ କଲ ତୁମେ ! ଆରେ ଦୁନିଆରେ ମାରି, ହାଣି, କାଟି ସବୁ ଚାଲିଛି; କିନ୍ତୁ ସେଥି ସଙ୍ଗେ ସଙ୍ଗେ ଲୋକେ କଅଣ

ଖାଇବା, ପିଇବା, ମଉଜମଜଲିସ୍ ସବୁ ଛାଡ଼ ଦେଇଛନ୍ତି ? ଆରେ କଟକ ଭଳିଆ ଟାଉନ୍‌ରେ ଏଇ ଦୁର୍ଦ୍ଦିନରେ ଯେତେବେଳେ ଟଙ୍କାରେ ଦୁଇ ସେର ଗ୍ରଉଳ, ସେତେବେଳେ ମଉଜମଜଲିସର ଅଭାବ ନାହିଁ ! ଆରେ ସଙ୍ଗୀତ ଆଉ ପ୍ରେମ ଏ ଦୁଇଟା ଯଦି ମୂହୂର୍ତ୍ତକ ପାଇଁ ବନ୍ଦ ହୁଏ, ତାହାହେଲେ ଯେଉଁ ପୃଥିବୀରେ ଶାନ୍ତି ଅଣିବା ଲକ୍ଷ୍ୟ ତୁମର, ସେହି ପୃଥିବୀ ସେ ସେଇ ମୂହୂର୍ତ୍ତରେ ରସାତଳଗାମିନୀ ହେବ, ବୁଝିଲ ?

ପ୍ରେମ—ହଁ, ଥାଉ ଥାଉ; ସେ ସବୁ ଶୁଣିବା ମୋର ଇଚ୍ଛା ନୁହେଁ ! ବର୍ତ୍ତମାନ କର୍ତ୍ତବ୍ୟର ବିଷୟ ଆଲୋଚନା କରାଯାଉ ! ହଁ, ଗୋଟିଏ ସୁଖବର ଶୁଣିଛନ୍ତି ? ମୋ ସଙ୍ଗେ ସହଯୋଗ କରିବାଲାଗି ମୁଁ ଗୋଟିଏ ନାରୀ କର୍ମୀ ପାଇଛି, ଠିକ୍ ମୋର ସ୍ୱଭାବର ଲୋକ ସେ ।

ରାଜୁ—ବାସ୍ତବିକ୍ ଶୁଣି ସୁଖୀ ହେଲି । ତେବେ ତାଙ୍କର ଦର୍ଶନ ପାଇ-ପାରେ କି ?

ପ୍ରେମ—ସେ ତ ସର୍ବଦା ମୋର ପାଖରେ ରହିବେ, କର୍ମକ୍ଷେତ୍ରରେ ଦେଖି ପାରିବେ । ତେବେ କାଲି ଯେଉଁ ସଭା କରିବାର ଥିଲା, ତାର ବନ୍ଦୋବସ୍ତ କଅଣ କଲେ ?

ରାଜୁ—ସେ ସବୁ ଠିକ୍ ଅଛି, ସେଥିପାଇଁ ସମାଜକୁ ବିଜ୍ଞାପନ ଦେଇ ସାରିଛି ! କିନ୍ତୁ ପ୍ରସେସନର ଭାର ତୁମ ଉପରେ !

ପ୍ରେମ—ସେ ବିଷୟରେ ଆପଣ ନିଶ୍ଚିନ୍ତ ଥାଆନ୍ତୁ, ମୁଁ ଯାଏ ମୋର ସହକର୍ମୀଙ୍କର ଦେଖାଶୁଣା କରେଁ । (ପ୍ରସ୍ଥାନ)

---

# ସପ୍ତମ ଦୃଶ୍ୟ

## ପଥ—

ହକାର—ସମାଜ, ଦୈନିକ ସମାଜ ! ଗୌରୀଶଙ୍କର ପାର୍କରେ ସାଧାରଣ ସଭା, ସମସ୍ତ ଅପରାହ୍ଣ ୫ ଘଣ୍ଟା, ବିଷୟ—ଶତ୍ରୁ ଅକ୍ରମଣରୁ ଦେଶକୁ ରକ୍ଷା କରିବା, ସଭାପତି—ରମାଚରଣ ମଙ୍ଗରାଜ !

(କହି କହି ପ୍ରସ୍ଥାନ)

( ତାର ପରେ ଆସିଲା ବିରାଟ ଶୋଭାଯାତ୍ରା )

"ଚୃଲ୍ ରେ ଚୃଲ୍—ଆଗେଇ ଚୃଲ୍"

( ଅଜ ଯେ ଆସିଛି ଦେଶର ଡାକ
ଅଜ ଯେ ଆସିଛି ଜାତିର ଡାକ ! )

ତୋର ଏ ବକ୍ଷ ପାଷାଣ ଶକ୍ତ
ଧମନୀରେ ତୋର ବୀରର ରକ୍ତ
ଅସିର ଝଲକେ ଚମକୁ ଅରାତି
ଦେଶ ପୁଅ ରଖ ଦେଶର ଟେକ ।
ଅଜ ଯେ ଆସିଛି ଜାତିର ଡାକ । ୧ ।

ପୋଛି ଦେ ତୋ ମନୁ ଭାବନା ଦୈନ୍ୟ
ଓଡ଼ିଆପୁଅ ତୋ ଜୀବନ ଧନ୍ୟ !
ଉଠ ରେ, ଜାଗ ରେ ନାହିଁ ବେଳ ଅର
ଶତ୍ରୁ ଦେଲାଣି ଦୁଆରେ ଡାକ;
ଅଜି ଯେ ଆସିଛି ଜାତିର ଡାକ । ୨ ।

ଭୂ ଯେ ରେ ପାଇକ ନବଜୁଆନ
ଖଣ୍ଡାୟତ ସେ ଲୁହାରୁ ଟାଣ
ଏ ଦୃଢ଼ ଶକତି ପଶିଲେ ସମରେ

କେଉଁ ଅସ୍ତର ଉଦ୍ଭବ ଠେକ,
ଆଜି ସେ ଆସିଛୁ ଜାତର ଡାକ । ୩ ।

---

## ଅଷ୍ଟମ ଦୃଶ୍ୟ

### —ପାର୍କ ସମ୍ମୁଖ—

(ସଭାପତି ବସିଛନ୍ତି, ଲୋକମାନେ ବସିଛନ୍ତି, ପ୍ରାରମ୍ଭିକ ଗୀତ
ଗାନାନ୍ତେ ସଭାପତିଙ୍କୁ ମାଳାଦାନ)

ବାଜୁରେ ବିଜୟଭେରୀ
ଗଗନ ପବନ ଭରି
ସାଜ କଳିଙ୍ଗ ପାଇକ ବାହିନୀ
ଶଙ୍କ ଅଗ୍ରିତ ଡର । ୧ ।
ପାଇକବଧୂ ଧର ବରଣଡାଲା
ଅରପୁ ଶୀରଗଲେ କୁସୁମମାଳା
ଜୟ ଜନନୀ ସଙ୍ଗୀତ ରବେ
ଉଠୁରେ ବିଶ୍ୱ ଥର । ୨ ।
(ମାଳାଦାନ) ।

ଉମା ବାବୁ—ମୁଁ ପ୍ରସ୍ତାବ କରୁଛି ଯେ, ଆମର ତରୁଣ କର୍ମୀ ଶ୍ରୀମାନ୍ ରାଜକିଶୋର ବାବୁ ଆଜି ଯୁବ ପରିସ୍ଥିତି ସମ୍ବନ୍ଧରେ କିଛି କହିବେ ।
(ଘନଘନ କରତାଳି)

ଜଣେ—ମୁଁ ଅନ୍ତରର ସହିତ ଅନୁମୋଦନ କରୁଛି ।

ରାଜ—(ଉଠି) ମାନନୀୟ ସଭାପତି ମହୋଦୟ ଓ ଭାଇ ଓ ଭଉଣୀ-ମାନେ !

ଆଜ ଆପଣମାନେ ଶତ୍ରୁ ଆକ୍ରମଣରୁ ଦେଶକୁ କପରି ରକ୍ଷା କରିବାକୁ ହେବ, ସେ ବିଷୟରେ ଆଲୋଚନା କରିବାକୁ ରୁଣ୍ଡ ହୋଇଛନ୍ତି । ଆପଣମାନେ ଓଡ଼ିଶାର ଅତୀତ କାହାଣୀ କଣ ଭୁଲିଗଲେଣି ? ପାଇକପୁଅର ଢାଲ ଓ ଖଣ୍ଡାଧ୍ୱନିର ଖଣ୍ଡାରେ କଣ ଏତେ ଶୀଘ୍ର କଳଙ୍କ ଲାଗିଗଲା ? ଗଜାରୋହୀ ଓ ଅଶ୍ୱାରୋହୀମାନେ କଣ ବ୍ୟୂହରଚନା ଭୁଲିଗଲେ ? ଦେଶର ରସାୟନକମାନେ ଗୋଳା ବାରୁଦ ତିଆରି କଣ ଭୁଲିଗଲେ ? ନା, ମୋର ବିଶ୍ୱାସ, କେହି କିଛି ଭୁଲି ନାହାନ୍ତି । ସୁପ୍ତ ସିଂହଜାତି ନିଜର ଜନ୍ମଭୂମି ଓ ମା ଭଉଣୀ-ମାନଙ୍କୁ ବର୍ବର ନାଗୀ ଆକ୍ରମଣରୁ ରକ୍ଷା କରିବାକୁ ଅଗ୍ରସର ହେବେ ।

(କରତାଳି ଶବ୍ଦ)

ରାଜ—ପୁଣି ମୁଁ କହେ, ଦେଶର ଗୃହଅଡ଼େ ବଳବୀର୍ଯ୍ୟ ବୀରଭଦ୍ର, ସମସ୍ତେ ଦେଶକୁ ଶତ୍ରୁହାତରୁ ରକ୍ଷା କରିବାପାଇଁ କୃତସଙ୍କଳ୍ପ ହୁଅନ୍ତୁ ! ଏତିକି କହି ମୁଁ ବିଦାୟ ନେଉଛି ।

(କରତାଳି ଶବ୍ଦ)

ଉମା ବାବୁ—ମୋର ଅନୁରୋଧ ଯେ, ଆମର ଦେଶପ୍ରେମୀ ଶ୍ରୀମାନ୍ ରାମ ବାବୁ କିଛି କହିବେ ।

ରାମ—(ଠିଆ ହୋଇ) ମାନନୀୟ ସଭାପତି ମହୋଦୟ, ଉପସ୍ଥିତ ଭଦ୍ରମହିଳା ଓ ମହୋଦୟଗଣ !

ପୂର୍ବବକ୍ତା ଯାହା କହିଲେ; ତାହାଠାରୁ ମୋର ବେଶୀ କିଛି କହିବାର ନାହିଁ; ତେବେ ମୁଁ ସଂକ୍ଷେପରେ ଏତିକି କହେଁ ଯେ— ଚନ୍ଦ୍ରଶକ୍ତି ଯେଉଁ ଜୁଲୁମ ଶାସନ ଚଳାଇବାକୁ ବସିଛନ୍ତି, ତାହା ବୋଧହୁଏ ଆପଣମାନେ ପ୍ରତ୍ୟେକେ ଜାଣନ୍ତି । ଯେଉଁ ନାଗୀବାଦ ଦୁନିଆର ଧନ ଦଉଲତ ଲୁଣ୍ଠି କରିବାକୁ ବସିଛି, ସେ ନୀତି ଖୁବ୍

ଗଣସ୍ୱାର୍ଥୀ ବୋଲି ମୋର ବିଶ୍ୱାସ । ଯେଉଁ ପୋଲାଣ୍ଡ, ହଲାଣ୍ଡ, ବେଲ୍‌ଜିୟମ୍ ଓ ଫ୍ରାନ୍‌ସ ସେ ଦଖଲ କରିଛି, ପୁନର୍ବାର ନାଜୀବାଦ ବିରୁଦ୍ଧରେ ସେମାନେ ଆନ୍ଦୋଳନ ଚଳାଇଲେଣି । ଏ ସମୟରେ ଗଣତନ୍ତ୍ର ନୀତିକୁ ରକ୍ଷା କରିବା ପାଇଁ ସହଯୋଗ କରିବା ଆମ୍ଭ-ମାନଙ୍କର ଉଚିତ । (ବସି ପଡ଼ିଲେ)

(କରତାଳି ବାଦନ)

ଉମା ବାବୁ—ଶ୍ରୀମତୀ ଲୀଳାଦେବୀଙ୍କୁ କିଛି କହିବାକୁ ଅନୁରୋଧ କରେଁ !

ଲୀଳା—ସଭାପତି ମହୋଦୟ, ଭାଇ ଓ ଭଉଣୀମାନେ ! ଆଜି ବୀର-ପ୍ରସବିନୀ ଭାରତମାତାର ସବୁ ଧର୍ମ, ସବୁ ଜାତିର ସନ୍ତାନମାନେ, ଚକ୍ରଶକ୍ତିର ବିରୁଦ୍ଧରେ ଯୁଦ୍ଧରେ ଯୋଗ ଦେଲେଣି । ଆମ ଓଡ଼ିଶାର ପାଇକ ଓ ଖଣ୍ଡାୟତମାନେ ମଧ୍ୟ ସେଥିରେ ଯୋଗ ଦେଲେଣି । ଆମର କର୍ତ୍ତବ୍ୟ ଯେ, ଯୁବକମାନଙ୍କୁ ଉତ୍ତେଜନା ଦେଇ ସେମାନଙ୍କୁ ସୈନ୍ୟଶ୍ରେଣୀଭୁକ୍ତ କରାଇବା ଆଉ ସେମାନଙ୍କୁ ସବଳ ଓ ଶକ୍ତିଶାଳୀ କରାଇ ଅନ୍ତତଃ ଅସନ୍ତା ୧୦ ବର୍ଷ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ରହିବା । ସୈନ୍ୟମାନଙ୍କୁ ଖାଦ୍ୟ ଯୋଗାଇବାକୁ ଗ୍ରାମ ଗହଳରେ ଅଧିକ ଶସ୍ୟ ଉତ୍ପନ୍ନ କରାଇବାକୁ ହେବ । ଗୋଳା ବାରୁଦ ଓ ଉଡ଼ାଜାହାଜ ତିଆରି ପାଇଁ ଅର୍ଥ ସଂଗ୍ରହ କରିବାକୁ ହେବ ଏବଂ ଯେଉଁ ନାଜୀ ଏଜେଣ୍ଟମାନେ ଦେଶରେ ଆତଙ୍କ ସୃଷ୍ଟି କରିବାକୁ ବସିଛନ୍ତି, ସେମାନଙ୍କୁ ଫାଶୀକାଠରେ ଝୁଲାଇବାକୁ ହେବ ।

(କରତାଳି ଶବ୍ଦ)

ଏବଂ ବୃଥା ଆତଙ୍କ ଦୂର କରିବାକୁ ଗ୍ରାମେ ଗ୍ରାମେ ସଂଗଠନ ଓ ପ୍ରଚାର ମଧ୍ୟ କରିବାକୁ ହେବ, ଏହାହିଁ ଆମର ବର୍ତ୍ତମାନ କର୍ତ୍ତବ୍ୟ, ଏଥିରେ ଯେ ହେଳା କରିବ ସେ ଦେଶଦ୍ରୋହୀ, ତାର ଶାସ୍ତି ସେ ଆପେ ଆପେ ପାଇବ । (ବସିଲେ)

ଉମା ବାବୁ—(ଉଠି) ଉପସ୍ଥିତ ଭାଇ ଭଉଣୀମାନେ ! ଆଜ ଯେଉଁ ଗୁରୁ ଦାୟିତ୍ୱପୂର୍ଣ୍ଣ କର୍ତ୍ତବ୍ୟଭାର ମୋର ଶୀର୍ଣ୍ଣ ସ୍କନ୍ଧରେ ନ୍ୟସ୍ତ କରିଥିଲେ, ସେଥିପାଇଁ ମୁଁ ଆପଣମାନଙ୍କୁ ମୋର କୃତଜ୍ଞତା ଜ୍ଞାପନ କରୁଛି । ମୋର ପୂର୍ବବର୍ତ୍ତୀ ବକ୍ତାମାନେ ଯାହା କହିଗଲେ, ତାହାଛଡ଼ା ଅଧିକା ମୋର କିଛି କହିବାର ନାହିଁ । ତେବେ ଏଇ ଅନୁରୋଧ ଯେ, ଆପଣମାନେ ସମସ୍ତେ ସମସ୍ୱରରେ କହନ୍ତୁ ଥରେ ଯେ—

"ନାଜୀବାଦ ଧ୍ୱଂସ ହେଉ"
"ଗଣତନ୍ତ୍ରର ଜୟ ହେଉ"

---

## ବିଦାୟ ସଙ୍ଗୀତ

"ବିଦାୟ ଘଣ୍ଟି ବାଜେ କରୁଣତାନେ"
ରଙ୍ଗ ରଙ୍ଗ ଏ ମଧୁର ସନ୍ଧ ଲଗନେ ।
ମିଳନ ମାଧୁରୀ ନାଶି
ରବି ଅସ୍ତାଚଳବାସୀ
ରହିଥିବ ମାତ୍ର କ୍ଷୀଣ ସ୍ମୃତି ଗୋପନେ । ୧ ।
(ଗାନ ପରେ ଉଠିଲେ ପ୍ରେମଲତା)

ପ୍ରେମ—ମାନନୀୟ ସଭାପତି ମହୋଦୟ, ଉପସ୍ଥିତ ଭାଇ ଓ ଭଉଣୀମାନେ ଏହି ସଭା ଭାଙ୍ଗିବା ପୂର୍ବରୁ ମୋର ଟିକଏ ବକ୍ତବ୍ୟ ଅଛି । ଆଜି, ଜଣା ଅଜଣା ଅସଂଖ୍ୟ ନରନାରୀଙ୍କ ମିଳନରେ ମୋର ପ୍ରାଣରେ ଯେ କି ଆନନ୍ଦର ଢେଉ ଖେଳୁଛି, ତାହା ବର୍ଣ୍ଣନାତୀତ । କିନ୍ତୁ ବର୍ତ୍ତମାନ ଆପଣମାନଙ୍କ ସମ୍ମୁଖରେ ମୁଁ ଗୋଟିଏ ମିଳନାତ୍ମକ ନାଟକ ଅଭିନୟ କରିବାକୁ ଚାହେଁ,—

ଅଳ୍ପକ୍ଷଣ ପୂର୍ବରୁ ଯେଉଁ ନାରୀକର୍ମୀଙ୍କ ବକ୍ତୃତା ଆପଣମାନେ ଶୁଣିଛନ୍ତି, ତାଙ୍କର ପରିଚୟ ବୋଧହୁଏ ଜାଣନ୍ତି ନାହିଁ । ସେ ହେଉଛନ୍ତି ଦେଶପ୍ରେମିକ ଏକ ଶ୍ରୀଯୁକ୍ତ ରମପ୍ରସାଦ ବାବୁଙ୍କ ଭୁଲ କ୍ରମେ ପରିତ୍ୟକ୍ତା ପତ୍ନୀ, ନାମ ଶ୍ରୀମତୀ ଲୀଳାବତୀ ।

(ସୁସଜ୍ଜିତା ଲୀଳାକୁ ନେଇ ଠିଆ କରି)

ଅସନ୍ତୁ ରମ ବାବୁ । ଆପଣଙ୍କର ଭୁଲ ଭାଙ୍ଗନ୍ତୁ !

(ହାତ ମିଳାଇ ଦେବା)

ରମ—ଲୀଳା ! ମୋତେ କ୍ଷମା କର ଲୀଳା !

(ସମସ୍ତଙ୍କର କରତାଳ)

ଉମା ବାବୁ—ରୁହନ୍ତୁ ରୁହନ୍ତୁ ପ୍ରେମଲତା ଦେବୀ । ଏ ତ ଗଲା ଆପଣଙ୍କର ନାଟକର ଗୋଟିଏ ଦୃଶ୍ୟ, ଆଉ ଗୋଟିଏ ବାକି ଅଛି ଯେ—

(ପ୍ରେମକୁ ଟାଣିଆଣି ରାଜୁ ହାତରେ ହାତ ମିଳାଇ)

ଶୁଣ ବାବା ରାଜୁ । ତୁମେ ମୋର ଏଇ କାରୁଣ୍ୟା ବର୍ମା ଫେରନ୍ତା ଓଡ଼ିଆ ଝିଅଟିର ଭାର ଗ୍ରହଣ କର, ଏଇ ମୋର ଅନ୍ତରର ବାସନା

(କରତାଳ)

## ଯବନିକା



Printed by P, Kar at the U. S. Press, Cuttack—1943